ପ୍ରଥମ ରାଜକିଶୋର ସାମନ୍ତରାୟ ସ୍ମାରକୀ ବକ୍ତୃତାମାଳା

# ଭାରତୀୟ ସମାଜବାଦୀ ଆନ୍ଦୋଳନର
# ଅତୀତ ଓ ବର୍ତ୍ତମାନ

ଡକ୍ଟର ବିଭୂତି ପଟ୍ଟନାୟକ

ରାଜକିଶୋର ସାମନ୍ତରାୟ ଜୟନ୍ତୀ କମିଟି
ରାଉରକେଲା



# ରାଜକିଶୋର ସାମନ୍ତରାୟ

ସମାଜବାଦୀ ଚେତନା ଓ ନବ ଜାଗରଣର ପ୍ରତୀକ ଓ ବାର୍ତ୍ତାବହ

(୧୯୨୮-୨୦୦୫)

ସ୍ୱର୍ଗତଃ ରାଜକିଶୋର ସାମନ୍ତରାୟଙ୍କ ୭୮ତମ ସ୍ୱନକ୍ଷତ୍ର ଦିବସ ଉପଲକ୍ଷ୍ୟେ ଆୟୋଜିତ ଯୁବଚେତନା ଦିବସରେ ମତେ ସ୍ମାରକୀ ବକ୍ତୃତା ଦେବା ପାଇଁ ଆମନ୍ତ୍ରଣ କରିଥିବା ହେତୁ ମୁଁ ଜୟନ୍ତୀ କମିଟି ସଭାପତି ତଥା ଅନ୍ୟ କର୍ମକର୍ତ୍ତାମାନଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି । ମୁଁ ରାଜକିଶୋର ସାମନ୍ତରାୟ ପ୍ରଥମ ସ୍ମାରକୀ ବକ୍ତୃତା ଦେବା ପାଇଁ ସମ୍ମତ ହେଲି ଏଇଥିପାଇଁ ଯେ ଏକଦା ଆମେ ଦୁହେଁ ଏକ ଶ୍ରେଣୀହୀନ, ଶୋଷଣହୀନ, ସମାଜବାଦୀ ସମାଜ ନିର୍ମାଣର ସ୍ୱପ୍ନ ଦେଖି ଭାରତୀୟ ସମାଜବାଦୀ ଆନ୍ଦୋଳନରେ ଯୋଗ ଦେଇଥିଲୁ । ସେ ପ୍ରଜା-ସୋସଲିଷ୍ଟ ପାର୍ଟି ସଂଗଠନ ଏବଂ ଶ୍ରମିକ ଆନ୍ଦୋଳନର ନେତୃତ୍ୱ ନେଇଥିଲା ବେଳେ ମୁଁ ପାର୍ଟିର ଛାତ୍ର ସଂଗଠନ ଏବଂ ପାର୍ଟିର ମୁଖପତ୍ର ସାପ୍ତାହିକ ''କୃଷକ'' ସଂପାଦନା ଦାୟିତ୍ୱ ଗ୍ରହଣ କରିଥିଲି । ମୁଁ ୧୯୫୫ ମସିହାରେ ପାର୍ଟିର ଛାତ୍ର ସାମ୍ମୁଖ୍ୟ ଉତ୍କଳ ଛାତ୍ର ୟୁନିୟନର ଯୁଗ୍ମ ସଂପାଦକ ଭାବରେ କାର୍ଯ୍ୟ କରୁଥିବା ବେଳେ ସେ ପାର୍ଟିର ଯୁଗ୍ମ ସଂପାଦକ ରୂପେ ପାର୍ଟି ପ୍ରକାଶନ, ବିତରଣ ଏବଂ ପ୍ରାଦେଶିକ ପାର୍ଟି ଅଫିସ ଦାୟିତ୍ୱ ତୁଲାଇ ଥିଲେ । ହିନ୍ଦ ମଜଦୁର ସଭା ଯେପରି ପ୍ରଜା ସୋସଲିଷ୍ଟ ପାର୍ଟିର ଶ୍ରମିକ-ସାମ୍ମୁଖ୍ୟ ହେଲେ ସୁଦ୍ଧା ପାର୍ଟିର ପ୍ରତ୍ୟକ୍ଷ କର୍ତ୍ତୃତ୍ୱାଧୀନ ଏକ ଶାଖା ନଥିଲା, ଛାତ୍ର ୟୁନିୟନ ମଧ୍ୟ ସେହିପରି କମ୍ୟୁନିଷ୍ଟ ଛାତ୍ରସଂଘର ବିକଳ୍ପ ଛାତ୍ର ସଂଗଠନ ଥିଲା - ଯେଉଁଥିରେ ସୋସଲିଷ୍ଟ, କଂଗ୍ରେସ ଏବଂ ସ୍ୱାଧୀନ ମତାବଲମ୍ବୀ ଛାତ୍ରମାନଙ୍କୁ ଗୋଟିଏ ମଞ୍ଚରେ ଐକ୍ୟବଦ୍ଧ କରିବା ପାଇଁ ସ୍ଥିର କରାଯାଇଥିଲା । ମୁଁ ୧୯୫୬ ମସିହା ଐତିହାସିକ ସୀମା ଆନ୍ଦୋଳନ ମଧ୍ୟ ଦେଇ ଓଡ଼ିଶା ସୋସଲିଷ୍ଟ ଆନ୍ଦୋଳନ ସହିତ ସାମିଲ ହୋଇଥିଲି । । ସୀମା ଆନ୍ଦୋଳନ ପରେ ନିଖିଳ ଉତ୍କଳ ଛାତ୍ର ୟୁନିୟନରେ ସାଧାରଣ ସଂପାଦକ ଏବଂ ପରେ ସଭାପତି ପଦ ମତେ ଗ୍ରହଣ କରିବାକୁ ପଡ଼ିଥିଲା । ସାଥି ଗୋରାଚାନ୍ଦ ମିଶ୍ର 'କୃଷକ' ଦାୟିତ୍ୱରୁ ଅବ୍ୟାହତି ନେଇ 'ପ୍ରଜାତନ୍ତ୍ର'ରେ ଯୋଗ ଦେଲାପରେ ଛାତ୍ରସଂଗଠନ ସହିତ 'କୃଷକ' ସଂପାଦନା ଦାୟିତ୍ୱ ମଧ୍ୟ ପାର୍ଟି ମୋ ଉପରେ ନ୍ୟସ୍ତ କରିଥିଲା । ପ୍ରଜା ସୋସଲିଷ୍ଟ ପାର୍ଟିର ସଭାପତି ସେତେବେଳେ ଥିଲେ ବିଶ୍ୱନାଥ ପଣ୍ଡିତ ଏବଂ ସାଧାରଣ ସଂପାଦକ ରାଜକିଶୋର ସାମନ୍ତରାୟ । ମୁଁ ସେତେବେଳେ ପାର୍ଟିର ସକ୍ରିୟ ସଭ୍ୟ ମଧ୍ୟ ନଥିଲି । ତେଣୁ ବିଭିନ୍ନ ସମସ୍ୟା ସଂପର୍କରେ ପାର୍ଟିର ଆଭିମୁଖ୍ୟ ଜାଣିବା ପାଇଁ ପାର୍ଟିର ସାଧାରଣ ସଂପାଦକ ରାଜକିଶୋର ସାମନ୍ତରାୟଙ୍କ ସହିତ ପରାମର୍ଶ କରିବା ଲାଗି ପଣ୍ଡିତଜୀ ମତେ ନିର୍ଦ୍ଦେଶ ଦେଇଥିଲେ । ପାର୍ଟି ବିଭାଜନ ଫଳରେ ସାଥି ରବି ରାୟ, କିଶନ ପଟ୍ଟନାୟକ ପ୍ରଜା-ସୋସଲିଷ୍ଟ ପାର୍ଟି ଛାଡ଼ି ଚାଲିଗଲା ପରେ ସାଥି ସାମନ୍ତରାୟ ହିଁ ଥିଲେ ଏକମାତ୍ର ଯୁବନେତା ଯେ ଛାତ୍ର ସଂଗଠନ, 'କୃଷକ' ସଂପାଦନାରେ ମତେ ନାନା ଭାବରେ ସହାୟତା କରିଥିଲେ । ତାଙ୍କ ସହିତ ମୋର ଏକ ଅନ୍ତରଙ୍ଗ ସଂପର୍କ ଗଢ଼ିଉଠିଥିଲା । ସାଥି ସାମନ୍ତରାୟ ବଦଳରେ ମୁଁ ତାଙ୍କୁ ରାଜୁଭାଇ ବୋଲି ସମ୍ବୋଧନ କରୁଥିଲି । ୧୯୫୬ ରୁ ୧୯୬୦ ମସିହା ଏଇ ଚାରିବର୍ଷ ଉଭୟେ ଭାରତୀୟ ସମାଜବାଦୀ ଆନ୍ଦୋଳନର ଉତ୍‌ଥାନ ପତନ ସହିତ ଜଡ଼ିତ ଥିଲୁ । ଏହି ଚାରିବର୍ଷ

ହେଲା ଭାରତୀୟ ସମାଜବାଦୀ ଆନ୍ଦୋଳନର ଦିଗ ଓ ପାଗ ପରିବର୍ତ୍ତନର ଘଡ଼ିସନ୍ଧି ସମୟ, ପ୍ରଜା-ସୋସଲିଷ୍ଟ ପାର୍ଟିକୁ ପକ୍ଷାଘାତଗ୍ରସ୍ତ ସୋସଲିଷ୍ଟ ପାର୍ଟି ବୋଲି କହି ଡକ୍ଟର ରାମ ମନୋହର ଲୋହିଆ ଦଳ ଛାଡ଼ି ଚାଲିଗଲା ପରେ ଜୟପ୍ରକାଶ ନାରାୟଣ ହଠାତ୍ ବିନୋବା ଭାବେଙ୍କ ସର୍ବୋଦୟ ଆନ୍ଦୋଳନରେ ଯୋଗଦେବା ପାଇଁ ପାର୍ଟି ପରିତ୍ୟାଗ କଲେ । ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ପରଲୋକ ହୋଇଗଲା । ଜୟପ୍ରକାଶ, ନରେନ୍ଦ୍ର ଦେବ ଏବଂ ଡକ୍ଟର ଲୋହିଆ ଥିଲେ ଭାରତୀୟ ସମାଜବାଦୀ ଆନ୍ଦୋଳନରେ ସ୍ଥପତି-ତ୍ରୟୀ, ଏହି ତିନିଜଣଙ୍କ ଅବର୍ତ୍ତମାନରେ ସୋସଲିଷ୍ଟ ଆନ୍ଦୋଳନ ଦୁର୍ବଳ ହୋଇଗଲା । ଶାସନ କ୍ଷମତା ଦଖଲକରି ଦେଶରେ ଗଣତାନ୍ତ୍ରିକ ସମାଜବାଦ ପ୍ରତିଷ୍ଠାର ସ୍ୱପ୍ନ ଧୀରେ ଧୀରେ ମଳିନ ପଡ଼ିଗଲା । ପାର୍ଟିରେ ଘନ ଘନ ବିଭାଜନ ଏବଂ ଦଳ ପରିବର୍ତ୍ତନ ଯୋଗୁଁ ଲୋକେ ପାର୍ଟି ଉପରୁ ପତିଆରା ହରାଇ ବସିଲେ । କିନ୍ତୁ ଏ ଉତ୍ଥାନ ପତନ ମଧ୍ୟରେ ଏକ ଅଚଳ ମହାମେରୁ ଭଳି ଠିଆହୋଇ ରହିଥିଲେ ରାଜକିଶୋର ସାମନ୍ତରାୟ ଏବଂ ବିଶ୍ୱନାଥ ପଣ୍ଡିତ । ସୋସଲିଷ୍ଟ ପାର୍ଟ ୧୯୭୭ ମସିହାରେ ଜନତା ପାର୍ଟିରେ ବିଲୀନ ହୋଇଗଲା ପରେ ସେ ସମାଜବାଦୀ ଶ୍ରମିକ ସଂଗଠନ ହିନ୍ଦ ମଜଦୁର ସଭା, ବିଶେଷ କରି ରାଉରକେଲା ମଜଦୁର ସଭାକୁ ଏକ ସୁଦୃଢ଼ ଭିତ୍ତିଭୂମି ଉପରେ ଗଢ଼ିତୋଳିଥିଲେ । ହିନ୍ଦ ମଜଦୁର ସଭାର ସର୍ବଭାରତୀୟ ସଭାପତି ପଦ ଅଳଂକୃତ କରିଥିଲେ । କିନ୍ତୁ ପ୍ରଥମେ ସେ ଥିଲେ ଜଣେ ସୋସଲିଷ୍ଟ ଏବଂ ପରେ ଜଣେ ଶ୍ରମିକ ନେତା । ଭାରତୀୟ ସମାଜବାଦୀ ଆନ୍ଦୋଳନର ଆରୋହଣ ଅବରୋହଣ ସହିତ ତାଙ୍କର ରାଜନୈତିକ ଜୀବନ ଓତଃପ୍ରତଃ ଭାବରେ ଜଡ଼ିତ ଥିଲା । ଆଜି ତାଙ୍କର ସ୍ୱନକ୍ଷତ୍ର ଦିବସରେ ସେଥିପାଇଁ ସେହି ଆନ୍ଦୋଳନର ଇତିହାସକୁ ସ୍ମାରକୀ ଅଭିଭାଷଣର ମୁଖ୍ୟ ପ୍ରସଙ୍ଗ ଭାବରେ ମୁଁ ଉପସ୍ଥାପିତ କରିବାକୁ ଚାହେଁ ।

ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ପରିଚାଳିତ ସ୍ୱାଧୀନତା ଆନ୍ଦୋଳନ ମଧ୍ୟରେ କଂଗ୍ରେସ ମଧ୍ୟରେ ଏକ ସୋସାଲିଷ୍ଟ ସଂଗଠନର ଜନ୍ମ ହୋଇଥିଲା । ୧୯୩୪ ମସିହାରେ ନାସିକ ରୋଡ୍ ସେଣ୍ଟ୍ରାଲ ଜେଲରେ ଜୟପ୍ରକାଶ ନାରାୟଣ, ୟୁସୁଫ ମେହେରାଲ୍ଲି, ଅଚ୍ୟୁତ ପଟ୍ଟବର୍ଦ୍ଧନ, ଅଶୋକ ମେହଟ୍ଟା, ମିନୁ ମାସାନି ଓ ନାନା ସାହେବ ଗଣେଶ ଗୋରେ ପ୍ରମୁଖ ବନ୍ଦୀଥିବା ବେଳେ ମାର୍କ୍ସବାଦରେ ବିଶ୍ୱାସ କରୁଥିବା ଜାତୀୟତାବାଦୀ କଂଗ୍ରେସ ଲୋକଙ୍କୁ ନେଇ କଂଗ୍ରେସ ମଧ୍ୟରେ ଏକ ସୋସଲିଷ୍ଟ ସଂଗଠନ କରିବା ପାଇଁ ସେମାନେ ସ୍ଥିର କରିଥିଲେ । ପରେ ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଡକ୍ଟର ରାମ ମନୋହର ଲୋହିଆ ପ୍ରମୁଖ ନେତୃବୃନ୍ଦ ସେମାନଙ୍କ ସହିତ ଯୋଗ ଦେଇଥିଲେ । ୧୯୩୪ ମସିହା ମଇ ୧୭ ତାରିଖରେ ପାଟନା ଠାରେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ପ୍ରଥମ ସମ୍ମିଳନୀ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ହୋଇଥିଲା ।

କିନ୍ତୁ ସର୍ବଭାରତୀୟ ସ୍ତରରେ କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠିତ ହେବାର ଗୋଟିଏ ବର୍ଷ ଆଗରୁ ନବକୃଷ୍ଣ ଚୌଧୁରୀଙ୍କ ପ୍ରଚେଷ୍ଟାରେ ଓଡ଼ିଶାରେ ଏକ ଅନୁରୂପ ସଂଗଠନ ଗଢ଼ି

ଉଠିଥିଲା । ୧୯୧୭ ମସିହାରେ ଲେନିନ୍‌ଙ୍କ ନେତୃତ୍ୱରେ ଋଷିଆରେ ବଲସେଭିକ ବିପ୍ଳବର ସଫଳତା ଭାରତବର୍ଷର ବହୁ ତରୁଣ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ମାର୍କ୍ସବାଦ ପ୍ରତି ଆକୃଷ୍ଟ କରିଥିଲା । ଭଗତ ସିଂହ ଏବଂ ତାଙ୍କର ବିପ୍ଳବୀ ବନ୍ଧୁମାନେ ଏହି ମାର୍କ୍ସବାଦୀ ଦର୍ଶନ ଦ୍ୱାରା ଉଦ୍‌ବୁଦ୍ଧ ହୋଇ କେନ୍ଦ୍ରୀୟ ଶାସନ ବିଧାୟକ ସଭାରେ ବ୍ରିଟିଶ ସରକାର ଏକ ଶ୍ରମିକ ସ୍ୱାର୍ଥ ବିରୋଧୀ ଆଇନ ପାସ୍ କରାଇ ନେବା ଲାଗି ଆଲୋଚନା ଚଳାଇଥିବା ବେଳେ ଦର୍ଶକ ଗ୍ୟାଲେରୀରୁ ବୋମା ନିକ୍ଷେପ କରି ଗିରଫ ହୋଇଥିଲେ । ୧୯୩୧ ମସିହାରେ ବିଚାର ହୋଇ ତାଙ୍କୁ ଫାଶୀଦଣ୍ଡ ଦିଆଯାଇ ଥିଲା । ତରୁଣ ନବକୃଷ୍ଣଙ୍କ ଚିନ୍ତା ଓ ଚେତନାକୁ ଏହା ଚମକାଇ ଦେଇଥିଲା । ୧୯୩୨ ମସିହା ଅସହଯୋଗ ଆନ୍ଦୋଳନକୁ ପ୍ରତ୍ୟାହାର କରିନେଇ ମହାତ୍ମା ଗାନ୍ଧି ଯେତେବେଳେ ସବୁ କଂଗ୍ରେସ କର୍ମୀଙ୍କୁ ହରିଜନ ସେବା ସଂଗଠନରେ ମନଧ୍ୟାନ ଦେବାକୁ ନିର୍ଦ୍ଦେଶ ଦେଲେ, ନବକୃଷ୍ଣ ଚୌଧୁରୀ ଏବଂ ତାଙ୍କର ମାର୍କ୍ସବାଦୀ ସାଥିମାନେ ନିଜ ଭିତରେ ପ୍ରଚଣ୍ଡ ଅସ୍ଥିରତା ଅନୁଭବ କରିଥିଲେ । ହଜାରିବାଗ ଜେଲ୍‌ରେ ଥିବାବେଳେ ସେ କାର୍ଲ ମାର୍କ୍ସଙ୍କ ଶ୍ରେଣୀ ସଂଘର୍ଷ ତତ୍ତ୍ୱ ଏବଂ ସାମ୍ୟବାଦୀ ରାଜନୈତିକ ଦର୍ଶନ ସଂପର୍କରେ କିଛି ବହି ପଢ଼ାପଢ଼ି କରିଥିଲେ । ବିପ୍ଳବୀ ଲେନିନ ସେହି ମାର୍କ୍ସବାଦୀ ତତ୍ତ୍ୱକୁ ଆୟୁଧ କରି ଜାର୍‌ଶାହୀ ଶାସନର ଅବସାନ ଘଟାଇଥିଲେ ଏବଂ ସୋଭିଏତ୍ ଋଷରେ ସଂପତ୍ତି ଉପରୁ ବ୍ୟକ୍ତିଗତ ମାଲିକାନା ଲୋପ କରିଥିଲେ । ଚାଷଜମିର ସମାଜିକରଣ ପରେ ସେଠାରେ କୋଠଚାଷ ଆରମ୍ଭ ହୋଇଥିଲା । ସେହି ଆଦର୍ଶରେ ଅନୁପ୍ରାଣିତ ହୋଇ ତରୁଣ ନବକୃଷ୍ଣ ତରିକୁନ୍ଦ ଠାରେ ଥିବା ତାଙ୍କ ନିଜ ଚାଷ ଜମିରେ କୋଠଚାଷ କରିବା ପାଇଁ ନିଜ ଗ୍ରାମ ଖେରଶ ଛାଡ଼ି ନବବିବାହିତା ପତ୍ନୀଙ୍କୁ ସାଙ୍ଗରେ ଧରି ତରିକୁନ୍ଦ ଚାଲି ଆସିଥିଲେ । ସେହି ତରିକୁନ୍ଦ ଚାଷ ଫାର୍ମ ହେଲା ମାର୍କ୍ସବାଦୀ ସାମ୍ୟବାଦୀ ଆନ୍ଦୋଳନର ପରୀକ୍ଷାଗାର । ଗାନ୍ଧିଜୀ ଅସହଯୋଗ ଆନ୍ଦୋଳନ ପ୍ରତ୍ୟାହାର କରିନେଲା ପରେ ଚୌଧୁରୀ ଦମ୍ପତି ଜାତୀୟ କଂଗ୍ରେସ ମଧ୍ୟରେ ଥିବା ସୋସାଲିଷ୍ଟ ଭାବାପନ୍ନ ସାଥିମାନଙ୍କ ସହ ବିଚାର ବିମର୍ଶ କରି ଏକ ନୂତନ ବିପ୍ଳବୀ ସଂଗଠନ ଗଠନ କରିବା ପାଇଁ ବୈଠକ ଡକାଇ ଥିଲେ, ୧୯୩୩ ମସିହା ଫେବୃୟାରୀ ମାସରେ । ଏହି ଉଦ୍ଦେଶ୍ୟରେ ଯେଉଁ ଐତିହାସିକ ବୈଠକ ଡକାଯାଇଥିଲା, ସେଥିରେ ଯୋଗଦେଇଥିଲେ ଗୌରାଙ୍ଗ ଚରଣ ଦାସ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ମନମୋହନ ଚୌଧୁରୀ, ସୁଧୀରଚନ୍ଦ୍ର ଘୋଷ ଏବଂ ଡାକ୍ତର ନୃପେନ ସେନ୍ ପ୍ରମୁଖ ତରୁଣ କଂଗ୍ରେସ କର୍ମୀ । ଏହି ବୈଠକରେ 'ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀ ସଂଘ' ନାମରେ ଏକ ମାର୍କ୍ସବାଦୀ ସଂଗଠନ ଗଠନ କରାଯାଇଥିଲା ।

ସେତେବେଳେ 'ସୋସଲିଷ୍ଟ ' ଶବ୍ଦର ଓଡ଼ିଆ ଭାଷାନ୍ତର ଥିଲା 'ସାମ୍ୟବାଦୀ' । ସାମ୍ୟବାଦୀ କର୍ମୀ ସଂଘର ସାଧାରଣ ସଂପାଦକ ନବକୃଷ୍ଣ ଚୌଧୁରୀ ଏବଂ ଗୌରାଙ୍ଗ ଚରଣ ଦାସ, ସୁରେନ୍ଦ୍ର ନାଥ ଦ୍ୱିବେଦୀ ପ୍ରମୁଖ ସାତ ଜଣ କର୍ମଚାରୀ କମିଟିର ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲେ । ମାଳତୀ ଚୌଧୁରୀ ଥିଲେ ସଂଘର କୋଷାଧ୍ୟକ୍ଷ । ଯେଉଁମାନେ ପୁରା

ସମୟ ଦେଇ ସାମ୍ୟବାଦୀ ସମାଜ ଗଠନ କାମରେ ସମୟ ଦେଇପାରିବେ ସେହିମାନଙ୍କୁ ସଭ୍ୟ ଭାବରେ ଗ୍ରହଣ କରିବାପାଇଁ ସ୍ଥିର ହୋଇଥିଲା । ମାର୍କ୍ସବାଦୀ ବ୍ୟକ୍ତିଗତ ସଂମ୍ପତ୍ତିରେ ବିଶ୍ୱାସ କରୁନଥିବାରୁ କଂଗ୍ରେସ ସୋସଲିଷ୍ଟ କର୍ମୀ ସଂଘର ସଭ୍ୟମାନେ ସେହି କର୍ମୀ ସମ୍ମିଳନୀରେ ନିଜ ନିଜ ବ୍ୟକ୍ତିଗତ ସଂପତ୍ତି ସଂଘକୁ ଦାନ କରିଦେଇଥିଲେ । ନବକୃଷ୍ଣ ନିଜର ସମସ୍ତ ଭୂସଂପତ୍ତି ଏବଂ ମାଳତୀ ଚୌଧୁରୀ ନିଜର ସମସ୍ତ ସ୍ୱର୍ଣ୍ଣ ଅଳଙ୍କାର ପାର୍ଟି ସଂଗଠନ ଲାଗି ଦେଇ ଦେଇଥିଲେ । ସେତେବେଳେ ସୁନାର ମୂଲ୍ୟ ଖୁବ ଶସ୍ତା ଥିଲେ ମଧ ମାଳତୀ ଚୌଧୁରୀଙ୍କ ସୁନା ଅଳଙ୍କାର ବିକ୍ରି କରାଯାଇ ୬୦୦୦ ଟଙ୍କା ମିଳିଥିଲା । ଏହି ଅର୍ଥରେ ପ୍ରକାଶିତ ହୋଇଥିଲା ସାମ୍ୟବାଦୀ କର୍ମୀ ସଂଘର ମୁଖପତ୍ର 'ସାରଥି' । (୧) ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କର କୌଣସି ଚାଷଜମି କିମ୍ବା ଆୟଅଳଙ୍କାର ନଥିଲା । ଏକ ଦରିଦ୍ର ବ୍ରାହ୍ମଣ ପରିବାରର ସନ୍ତାନ ଭାବରେ ଥିଲା ଜାତି ଶ୍ରେଷ୍ଠ ବ୍ରାହ୍ମଣର ଅହଙ୍କାର ମନ୍ତ୍ରସିଦ୍ଧ ପଇତା । ସେ ସେହି ବୈଠକରେ ନିଜ କାନ୍ଧରୁ କାଢ଼ି ପଇତାକୁ ଫିଙ୍ଗି ଦେଇଥିଲେ । ତା'ପରେ ଆଉ କେବେ ସେ ପଇତା ପିନ୍ଧି ନଥିଲେ ।

ସାମ୍ୟବାଦୀ ଆନ୍ଦୋଳନର ଅୟମାରମ୍ଭ ସ୍ୱରୂପ ୧୯୩୩ ମସିହା ମଇ ପହିଲା ଦିନ ପ୍ରଥମ ଥର କଟକରେ ୧୨, ୧୩ ଜଣ ସୋସଲିଷ୍ଟ ଅନ୍ତର୍ଜାତିକ ଶ୍ରମିକ ଦିବସ ପାଳନ କରିଥିଲେ । ନବବାବୁଙ୍କ ନେତୃତ୍ୱରେ ଏକ ଶୋଭାଯାତ୍ରା ବାହାରି 'ଦୁନିଆର ଶ୍ରମିକ - ଏକ ହୁଅ' ଧ୍ୱନି ଦେଇ ଗୌରିଶଙ୍କର ପାର୍କରେ ପହଞ୍ଚି ଏକ ସଭା କରିଥିଲେ । ସଭା ଓ ଶୋଭାଯାତ୍ରାରେ 'ସାରଥି' ଛପା ହୋଇଥିବା କବିରାଜ ରାଧାନାଥ ଶତପଥିଙ୍କ ହାତଚଲା ପ୍ରେସ୍‌ର କେଇଜଣ କର୍ମଚାରିଙ୍କୁ ଛାଡ଼ି ଦେଲେ ଶ୍ରମିକ କେହି ନଥିଲେ । କିନ୍ତୁ ସଭା ଓ ଶୋଭାଯାତ୍ରାରେ 'ମହାତ୍ମା ଗାନ୍ଧିକି ଜୟ', 'ଭାରତ ମାତାକି ଜୟ' ବଦଳରେ 'ଦୁନିଆର ଶ୍ରମିକ - ଏକ ହୁଅ' ଧ୍ୱନି କଟକର ସାଧାରଣ ଲୋକଙ୍କ ମନରେ ଏକ ବୈପ୍ଳବିକ ଚମକ ସୃଷ୍ଟି କରିଥିଲା । ସଂଘର ମୁଖପତ୍ର 'ସାରଥି'ର ମଇ ପହିଲା ଜନ୍ମଦିନ ସଂଖ୍ୟାର ମଲାଟରେ ମଧ ଛପା ହୋଇଥିଲା କାର୍ଲମାର୍କ୍ସଙ୍କ ସେହି ଆଗ୍ନେୟ ଆହ୍ୱାନ 'ଦୁନିଆର ଶ୍ରମିକ - ଏକ ହୁଅ' ।

ଉତ୍କଳ ସାମ୍ୟବାଦୀ କର୍ମୀ ସଂଘ କଂଗ୍ରେସ ଦଳ ମଧରେ ଗୋଟିଏ ଲଢୁଆ ଗୋଷ୍ଠୀ ଭାବରେ କାମ କରୁଥିଲା । ନୃପେନ୍ ସେନ, ସୁଧୀର ଘୋଷ ପ୍ରମୁଖ ମାର୍କ୍ସବାଦୀ ଏବଂ ବ୍ୟକ୍ତିଗତ ସଂପତ୍ତିର ସମାଜିକରଣ ନୀତିରେ ବିଶ୍ୱାସ କରୁନଥିବା ହେତୁ ସୋସଲିଷ୍ଟ କର୍ମୀ ସଂଘ ଛାଡ଼ି କଂଗ୍ରେସକୁ ଫେରି ଯାଇଥିଲେ । ମନମୋହନ ଚୌଧୁରୀ ବଙ୍ଗଳାର ଗାନ୍ଧିବାଦୀ ନେତା ସତିଶ ଚନ୍ଦ୍ର ଦାସଗୁପ୍ତାଙ୍କ ପ୍ରତିଷ୍ଠିତ ଆଶ୍ରମରେ ତାଲିମ ନେବା ପାଇଁ ସୋଦପୁର ଚାଲିଗଲେ । ସେମାନଙ୍କ ଶୂନ୍ୟସ୍ଥାନ ପୂରଣ ପାଇଁ କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ଯୋଗଦେଇଥିଲେ ଭଗବତୀ ଚରଣ ପାଣିଗ୍ରାହୀ, ପ୍ରାଣନାଥ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ଦିବାକର ପଟ୍ଟନାୟକ, ରବି ଘୋଷ ପ୍ରମୁଖ ସମାଜବାଦୀ ଭାବାପନ୍ନ ବିପ୍ଳବୀ ତରୁଣ ଗୋଷ୍ଠୀ । ସେତେବେଳେ ଓଡ଼ିଶାରେ ଆଖିଦୃଶିଆ କଳକାରଖାନା ବିଶେଷ କିଛି

ନଥିଲା । କଂଗ୍ରେସ ସୋସଲିଷ୍ଟମାନେ ମୋଗଲବନ୍ଦୀ ଅଞ୍ଚଳରେ ସାହୁକାର, ଜମିଦାରଙ୍କ ଶୋଷଣ ବିରୁଦ୍ଧରେ ଚାଷୀ ଆନ୍ଦୋଳନ ଏବଂ ଗଡ଼ଜାତରେ ରାଜାମାନଙ୍କ ହୁଙ୍କାପିଟା ଶାସନ ବିରୁଦ୍ଧରେ ପ୍ରଜାମୁକ୍ତି ଆନ୍ଦୋଳନ ଗଢ଼ିତୋଳିଥିଲେ ।

୧୯୩୪ ମସିହାରେ କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠିତ ହେଲା ପରେ ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀ ସଂଘ ତାହାସହିତ ମିଶି ଯାଇଥିଲା । ସଂଘର ନେତା ନବକୃଷ୍ଣ ଚୌଧୁରୀ ନିଖିଳ ଭାରତ କଂଗ୍ରେସ ସୋସଲିଷ୍ଟ ପାର୍ଟିର କାର୍ଯ୍ୟ ନିର୍ବାହିକା ସମିତିକୁ ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲେ ।

୧୯୩୪ ମସିହା ବେଳକୁ କଂଗ୍ରେସ ଏକ ରାଜନୈତିକ ଦଳ ନୁହେଁ, ଥିଲା ସ୍ୱାଧୀନତା ଆନ୍ଦୋଳନର ମହାସ୍ରୋତ । ଏଥିରେ ଜମିଦାର, ଶିଳ୍ପପତିମାନଙ୍କ ଠାରୁ ଆରମ୍ଭ କରି ଓକିଲ, ଶିକ୍ଷକ ସବୁଧର୍ମ, ସବୁଜାତି, ସବୁମତବାଦର ଲୋକେ ସାମିଲ ହୋଇଥିଲେ । କଂଗ୍ରେସ ପ୍ରଗତିଶୀଳ ଓ ରକ୍ଷଣଶୀଳ - ଏହି ପରି ଦୁଇଭାଗରେ ବିଭକ୍ତ ହୋଇଯାଇଥିଲା । ପ୍ରଗତିଶୀଳ ଗୋଷ୍ଠୀର ନେତା ଥିଲେ ଜବାହାରଲାଲ ନେହେରୁ, ରକ୍ଷଣଶୀଳ ଗୋଷ୍ଠୀର ମଉଡ଼ ମଣି ଥିଲେ ସର୍ଦ୍ଦାର ପଟେଲ । ଏ ଦୁଇଜଣ ଯାକ ଥିଲେ ଗାନ୍ଧିଜିଙ୍କର ଦୁଇବାହୁ । ପୂର୍ଣ୍ଣ ସ୍ୱାଧୀନତା ପ୍ରାପ୍ତି କଂଗ୍ରେସ ରାଜନୈତିକ ଲକ୍ଷ୍ୟଭାବରେ ଘୋଷିତ ହୋଇଥିଲେ ସୁଧା କଂଗ୍ରେସର ଅଥନୈତିକ କାର୍ଯ୍ୟକ୍ରମ ଅସ୍ପଷ୍ଟ ଥିଲା । ୧୯୩୪ ମସିହା ଅକ୍ଟୋବର ମାସରେ ଅନୁଷ୍ଠିତ କଂଗ୍ରେସ ସୋସଲିଷ୍ଟ ପାର୍ଟି ଜାତୀୟ ସମ୍ମିଳନୀରେ ଏକ ବିକଳ୍ପ କାର୍ଯ୍ୟକ୍ରମ ଉପସ୍ଥାପିତ କରାଯାଇଥିଲା । ପାର୍ଟି ସମ୍ବିଧାନରେ ବ୍ରିଟିଶ ସାମ୍ରାଜ୍ୟରୁ ଅଲଗା ହୋଇ ପୂର୍ଣ୍ଣ ସ୍ୱାଧୀନତା ଅର୍ଜନ ଏବଂ ସମାଜତାନ୍ତ୍ରୀକ ସମାଜ ବ୍ୟବସ୍ଥା ପ୍ରତିଷ୍ଠା ପାର୍ଟି ଲକ୍ଷ୍ୟ ଭାବରେ ଉଲ୍ଲେଖ କରାଯାଇଥିଲା । (୨) ଅର୍ଥନୈତିକ କାର୍ଯ୍ୟକ୍ରମରେ (କ) ଉତ୍ପାଦନକାରୀ ଜନଗଣଙ୍କୁ ସମସ୍ତ କ୍ଷମତା ହସ୍ତାନ୍ତର, (ଖ) ସର୍ବାଗ୍ରେ ମୂଳଶିଳ୍ପ (Basic Industries) ଓ ଜନପ୍ରୟୋଜନ ସାଧକ ସଂସ୍ଥା ଏବଂ କ୍ରମେ ଉତ୍ପାଦନ, ବଣ୍ଟନ ଓ ବିନିମୟ ସଂପର୍କିତ ସମସ୍ତ ପ୍ରତିଷ୍ଠାନର ସମାଜ ତନ୍ତ୍ରୀକରଣ (ଗ) ବୈଦେଶିକ ବାଣିଜ୍ୟ ଉପରେ ରାଷ୍ଟ୍ରର ଏକଚାଟିଆ କର୍ତ୍ତୃତ୍ୱ ସ୍ଥାପନ (ଘ) ବିନା କ୍ଷତିପୂରଣରେ ଜମିଦାର ଓ ଅନ୍ୟାନ୍ୟ ସକଳ ପ୍ରକାର ଶୋଷକ ଶ୍ରେଣୀର ବିଲୋପ ସାଧନ ଏବଂ (ଙ) କୃଷକମାନଙ୍କ ମଧ୍ୟରେ ଜମିର ପୂର୍ଣ୍ଣ ବଣ୍ଟନ ସବୁପ୍ରକାର କୃଷି ଋଣ ଛାଡ଼ଲାଗି ଦାବି କରାଯାଇଥିଲା ।

(୩) ଏହି ଦାବି ଉପରେ ଗଣ ଆନ୍ଦୋଳନ ଗଢ଼ିତୋଳି କଂଗ୍ରେସ ଉପରେ ଏହି ସମାଜବାଦୀ କାର୍ଯ୍ୟକ୍ରମକୁ ଗ୍ରହଣ କରିବା ଲାଗି ବାଧ୍ୟ କରିବା ଥିଲା କଂଗ୍ରେସ ସୋସଲିଷ୍ଟ ପାର୍ଟିର ଲକ୍ଷ୍ୟ । ଏଥିପାଇଁ ପାର୍ଟି କମ୍ୟୁନିଷ୍ଟ ମାନଙ୍କ ସହଯୋଗ ମଧ୍ୟ କାମନା କରୁଥିଲା । ବାସ୍ତବରେ ଦେଖିବାକୁ ଗଲେ ଜୟପ୍ରକାଶ ଆମେରିକାରେ ପାଠ ପଢୁଥିବା ବେଳେ ହିଁ ମାର୍କ୍ସବାଦ ଦ୍ୱାରା ପ୍ରଭାବିତ ହୋଇ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇଥିଲେ । ଲେନିନ୍

ଚାହୁଁଥିଲେ ଉପନିବେଶିକବାଦୀ ଶାସନ ବିରୋଧରେ ଯେଉଁଠି ଜାତୀୟ ମୁକ୍ତି ଆନ୍ଦୋଳନ ଚାଲିଥିବ, କମ୍ୟୁନିଷ୍ଟମାନେ ସେ ଆନ୍ଦୋଳନରେ ଅଂଶଗ୍ରହଣ କରିବେ । କିନ୍ତୁ ଜୟପ୍ରକାଶ ଭାରତ ବର୍ଷକୁ ଫେରିଆସି ଦେଖିଲେ ଭାରତୀୟ କମ୍ୟୁନିଷ୍ଟମାନେ ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ସ୍ୱାଧୀନତା ଆନ୍ଦୋଳନକୁ ବୁର୍ଜୁୟାମାନଙ୍କ କ୍ଷମତା ଦଖଲ ଲଢ଼େଇ ବୋଲି କହି ଜାତୀୟ ମହାସ୍ରୋତ ଠାରୁ ଅଲଗା ରହିଥିଲେ । ଲେନିନ୍‌ଙ୍କ ପରେ ଷ୍ଟାଲିନ୍ ସୋଭିଏତ୍ ଋଷର ସର୍ବମୟକର୍ତ୍ତା ହେଲାପରେ ଏସୀୟ, ଆଫ୍ରିକୀୟ ଦେଶର ସ୍ୱାଧୀନତା ଆନ୍ଦୋଳନରେ କମ୍ୟୁନିଷ୍ଟମାନଙ୍କ ଭାଗନେବା ବିରୁଦ୍ଧରେ ମତପୋଷଣ କରିଥିଲେ । କିନ୍ତୁ ଜୟପ୍ରକାଶ ନାରାୟଣଙ୍କର ମାର୍କ୍ସବାଦ ଲେନିନ୍‌ବାଦ ଉପରେ ପ୍ରଗାଢ଼ ଆସ୍ଥା ଥିବା ଯୋଗୁଁ ଭାରତବର୍ଷରେ ସାମ୍ରାଜ୍ୟବାଦ ବିରୋଧୀ ଗଣତାନ୍ତ୍ରିକ ସମାଜବାଦୀ ଆନ୍ଦୋଳନକୁ ସୁଦୃଢ଼ କରିବା ଲାଗି କଂଗ୍ରେସ ସୋସଲିଷ୍ଟ ପାର୍ଟିର ଦ୍ୱାର କମ୍ୟୁନିଷ୍ଟମାନଙ୍କ ପାଇଁ ଖୋଲା ରଖାଯାଇଥିଲା । କମ୍ୟୁନିଷ୍ଟ ପାର୍ଟି ସେତେବେଳେ ବେଆଇନ ଘୋଷିତ ହୋଇଥିବାରୁ ମାନବେନ୍ଦ୍ର ନାଥ ରାୟଙ୍କ ସମର୍ଥକ ବହୁ କମ୍ୟୁନିଷ୍ଟ ନେତା କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ଯୋଗଦେଇ ପାର୍ଟି ସଂଗଠନରେ ଉଚ୍ଚପଦବୀ ଗ୍ରହଣ କରିଥିଲେ । ଓଡ଼ିଶାରେ ସାଥୀ ଭଗବତୀଚରଣ ପାଣିଗ୍ରାହୀ ଥିଲେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ପ୍ରାଦେଶିକ ସମ୍ପାଦକ । କମ୍ରେଡ୍ ସାଜ୍ଜାଦ ଜାହିର, ବାଟଲିୱାଲା ଏବଂ ଦିନକର ମେହେଟା ନିଖିଳଭାରତୀୟ କଂଗ୍ରେସ ସୋସଲିଷ୍ଟ ପାର୍ଟିର ଜାତୀୟ କାର୍ଯ୍ୟନିର୍ବାହିକା ସମିତିକୁ ନିର୍ବାଚିତ ହୋଇଥିଲେ, ଇ.ଏମ୍.ଏସ୍. ନମ୍ବୁଦ୍ରିପଦ ଥିଲେ ପାର୍ଟିର ଯୁଗ୍ମ ସଂପାଦକ । ଆନ୍ଧ୍ରତାମିଲନାଡୁ ଟ୍ରାବାଙ୍କୋର-କୋଚିନ୍ (କେରଳ) ସୋସଲିଷ୍ଟ ପାର୍ଟି ବାସ୍ତବରେ କମ୍ୟୁନିଷ୍ଟ ସାଥିମାନଙ୍କ ନିୟନ୍ତ୍ରଣରେ ଥିଲା । କିନ୍ତୁ ୧୯୩୫ ମସିହାରେ ହଠାତ୍ ଆନ୍ତର୍ଜାତିକ କମ୍ୟୁନିଷ୍ଟ ସଂଗଠନର ଷଷ୍ଠ କଂଗ୍ରେସରେ ଗୃହୀତ ଉପନିବେଶିକ ଥିସିସ ଅନୁଯାୟୀ କଂଗ୍ରେସ ସୋସଲିଷ୍ଟ ପାର୍ଟିକୁ 'ପୁଞ୍ଜିପତିମାନଙ୍କର ବାମପଛିଚାଲ ଓ ସୋସିଆଲ ଫାସିଷ୍ଟ' ବୋଲି ଅବିହିତ କରିବା ପରେ କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ଥିବା କମ୍ୟୁନିଷ୍ଟମାନେ ଦଳ ଛାଡ଼ି ଅଲଗା ହୋଇଗଲେ । ଓଡ଼ିଶା କଂଗ୍ରେସ ସୋସଲିଷ୍ଟ ପାର୍ଟିରୁ ଭଗବତୀ ଚରଣ ପାଣିଗ୍ରାହୀ, ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ, ଗୁରୁଚରଣ ପଟ୍ଟନାୟକ ପ୍ରମୁଖ ଚାଲିଯିବା ଫଳରେ ପାର୍ଟି ଦୁର୍ବଳ ହୋଇଗଲା । ସମଗ୍ର ଦକ୍ଷିଣ ଭାରତ ପାର୍ଟି କମ୍ୟୁନିଷ୍ଟମାନଙ୍କ ନିୟନ୍ତ୍ରଣକୁ ଚାଲିଗଲା ।

ଏକା ଭାରତବର୍ଷରେ ନୁହେଁ ୟୁରୋପ ଏସିଆର ସୋସଲିଷ୍ଟ ଏବଂ ସୋସିଆଲ ଡେମୋକ୍ରାଟମାନଙ୍କୁ ମସ୍କୋନିୟନ୍ତ୍ରିତ କମ୍ୟୁନିଷ୍ଟ ଆନ୍ତର୍ଜାତିକ ପ୍ରଧାନ ଶତ୍ରୁ ବୋଲି ଘୋଷଣା କଲା । ଏହା ଷ୍ଟାଲିନ୍‌ଙ୍କ ନିର୍ଦ୍ଦେଶରେ ସୋଭିଏତ ଋଷର ରାଜନୈତିକ ସ୍ୱାର୍ଥ ଦୃଷ୍ଟିରୁ କରାଯାଇଥିଲା । ଏଡ଼ଲଫ୍ ହିଟଲର ଜର୍ମାନୀର ରାଷ୍ଟ୍ର କ୍ଷମତା ଦଖଲ କଲାପରେ ଷ୍ଟାଲିନ୍ ଭାବିଥିଲେ ନାଜୀମାନଙ୍କ ମୂଳଦୁଆ ଖୁବ୍ ଦୁର୍ବଳ । ନାଜୀବାଦ ଅପେକ୍ଷା ଜର୍ମାନ ସୋସଲିଷ୍ଟ

ଅର୍ଥାତ୍ ସୋସିଆଲ ଡେମୋକ୍ରେଟିକ୍ ପାର୍ଟି କମ୍ୟୁନିଷ୍ଟ ରାଷ୍ଟ୍ରରେ ଏକ ଦଳୀୟ ଶାସନର ଘୋର ବିରୋଧୀ ଥିବାରୁ କମ୍ୟୁନିଜିମର ବଡ଼ ଶତ୍ରୁ । ତେଣୁ ଜର୍ମାନୀରେ ନାଜିମାନଙ୍କ ସହାୟତାରେ ଶକ୍ତିଶାଳୀ ଜର୍ମାନ Social Democratic Partyକୁ ବିପର୍ଯ୍ୟସ୍ତ କରି ସାରିଲା ପରେ ହିଟଲରଙ୍କ ନାଜୀ ପାର୍ଟିକୁ ପରାସ୍ତ କରାଯାଇ ପାରିବ । କିନ୍ତୁ ହିଟଲର କମ୍ରେଡ୍ ଷ୍ଟାଲିନ୍‌ଙ୍କ ଠାରୁ ଅଧିକ ଚତୁର ଥିଲେ । ତାଙ୍କ ଫାସିଷ୍ଟ ନାଜିପାର୍ଟି କମ୍ୟୁନିଷ୍ଟମାନଙ୍କ ସହଯୋଗରେ ପ୍ରଥମେ ସୋସଲିଷ୍ଟମାନଙ୍କୁ ବିପର୍ଯ୍ୟସ୍ତ କରିସାରିଲା ପରେ ଜର୍ମାନ କମ୍ୟୁନିଷ୍ଟମାନଙ୍କ ତଣ୍ଟିଚିପି ଧରିବାକୁ ବାହାରିଲା । ଏ ସଂପର୍କରେ ଜୟପ୍ରକାଶ ନାରାୟଣ Letter to the PSP associatesରେ ଉଲ୍ଲେଖ କରିଛନ୍ତି - Had not the German Communists declared, under Stalin's inspiration, the Social Democrats to be 'enemy number one' and Nazis enemy only after them, Hitler could never have become the master of Germany. If the policy of socialist unity and popular front which was adopted after the victory of Nazism had been followed from the beginning, the course of history could have been different and the horrors of Hitlerism and the second world war forstalled or at least vastly mitigated".

ମୁଁ ଜୟପ୍ରକାଶଜୀଙ୍କ ବକ୍ତବ୍ୟକୁ ଆଉ ଟିକିଏ ଏପାଖ ସେପାଖ କରି କହିପାରେ ଯଦି କମ୍ୟୁନିଷ୍ଟମାନେ କଂଗ୍ରେସ ସୋସଲିଷ୍ଟ ପାର୍ଟି ଛାଡ଼ି ଚାଲି ଯାଇ ନଥାନ୍ତେ ଏବଂ ସ୍ୱାଧୀନତା ପ୍ରାପ୍ତି ପରେ ସୋସଲିଷ୍ଟ ଏବଂ କମ୍ୟୁନିଷ୍ଟ ପାର୍ଟିମାନଙ୍କ ମଧ୍ୟରେ ବାରମ୍ବାର ବିଭାଜନ ଘଟି ନଥାନ୍ତା, ତାହାହେଲେ ଭାରତବର୍ଷ ସାଂପ୍ରଦାୟିକ, ଜାତିବାଦୀ, ପୁଞ୍ଜିବାଦୀ ଶକ୍ତିର ଚରଣଭୂମି ହୋଇନଥାନ୍ତା । ବିଦେଶୀ ବାଣିଜ୍ୟିକ ଔପନିବେଶିକବାଦ ଭାରତବର୍ଷରବଜାର ଦଖଲ କରିବାର ସୁଯୋଗ ପାଇ ନଥାନ୍ତା । ଜାତୀୟ କଂଗ୍ରେସର ଏକ ବାମପନ୍ଥୀ ବିକଳ୍ପ ଭାରତବର୍ଷର ରାଷ୍ଟ୍ରକ୍ଷମତା ଦଖଲ କରିବାକୁ ସକ୍ଷମ ହୋଇ ଥାଆନ୍ତା ।

କିନ୍ତୁ ଇତିହାସରେ 'ଯଦି' ଶବ୍ଦ ଏକ ଅର୍ଥହୀନ ଅବ୍ୟୟ ପଦ । କମ୍ୟୁନିଷ୍ଟମାନଙ୍କ ଦଳତ୍ୟାଗ ପରେ ମଧ୍ୟ କଂଗ୍ରେସ-ସୋସଲିଷ୍ଟମାନେ ୧୯୪୨ ଅଗଷ୍ଟ ଆନ୍ଦୋଳନର ନେତୃତ୍ୱ ନେଇ ଇତିହାସର ଗତି ବଦଳାଇ ଦେଇଥିଲେ । ୧୯୪୨ ଅଗଷ୍ଟ ୯ ତାରିଖ ଦିନ ବମ୍ବେ ଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ମହାତ୍ମାଗାନ୍ଧି ବ୍ରିଟିଶ ସରକାରଙ୍କୁ ଭାରତ ଛାଡ଼ ନୋଟିସ ଦେଇ, ଦେଶବାସୀଙ୍କୁ ''କର ବା ମର'' ଆହ୍ୱାନ ଦେଇ କାରାରୁଦ୍ଧ ହେଲେ, ଅନ୍ୟସବୁ କଂଗ୍ରେସ ନେତାମାନଙ୍କ ସହ ସୋସଲିଷ୍ଟନେତା ଆଚାର୍ଯ୍ୟ ନରେନ୍ଦ୍ର ଦେବ ମଧ୍ୟ ଗିରଫ ହୋଇଗଲେ । ଯେତେବେଳେ ଜୟପ୍ରକାଶ ନାରାୟଣ ହଜାରିବାଗ ଜେଲ୍‌ରେ ଥିଲେ । ୟୁସୁଫ ମେହେରାଲ୍ଲି ବମ୍ବେର ମେୟର । ତାଙ୍କ ଘରେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ଗୋପନ ବୈଠକ ଅନୁଷ୍ଠିତ ହେଲା । ସେ ବୈଠକରେ ଯୋଗ ଦେଇଥିଲେ ଓଡ଼ିଶାରୁ

ମାଳତୀ ଚୌଧୁରୀ ଏବଂ ସୁରେନ୍ଦ୍ର ନାଥ ଦ୍ୱିବେଦୀ । ସେହି ବୈଠକରେ ସ୍ଥିର ହେଲା ଯେ କଂଗ୍ରେସ ନେତାମାନେ ଗିରଫ ହୋଇ ଯାଇଥିବାରୁ ସୋସଲିଷ୍ଟମାନେ ଆତ୍ମଗୋପନ କରି ଗିରଫ ନହେବା ପର୍ଯ୍ୟନ୍ତ ଗାନ୍ଧିଜୀଙ୍କ 'କର ବା ମର' ଡାକରାକୁ କାର୍ଯ୍ୟକାରୀ କରିବେ । ଅର୍ଥାତ୍ ଦେଶକୁ ସ୍ୱାଧୀନ କରିବେ ନହେଲେ ମରିବେ । ଡକ୍ଟର ରାମ ମନୋହର ଲୋହିଆ, ଅରୁଣା ଆସଫ ଅଲି ଏବଂ ଜେଲ ପ୍ରାଚୀର ଡେଇଁ ଜୟପ୍ରକାଶ ନାରାୟଣ ପଳାଇ କରି ଅଗଷ୍ଟ ବିପ୍ଳବର ନେତୃତ୍ୱ ନେଲେ । ଓଡ଼ିଶାରେ ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ ସୁରେନ୍ଦ୍ର ନାଥ ଦ୍ୱିବେଦୀ । ସୋସଲିଷ୍ଟମାନଙ୍କ ନେତୃତ୍ୱରେ ବ୍ରିଟିଶ ସରକାରଙ୍କ ଶାସନ କଳକୁ ଅଚଳ କରିଦେବା ପାଇଁ ବ୍ୟାପକ ଅନ୍ତର୍ଘାତି ମୂଳକ କାର୍ଯ୍ୟ ଆରମ୍ଭ ହୋଇଗଲା । ନେପାଳ ସୀମାନ୍ତ ଅରଣ୍ୟରେ ଗୋପନ ଘାଟି ଗଢ଼ି ଜୟପ୍ରକାଶ - ଲୋହିଆ 'ଆଜାଦ୍ ଦସ୍ତା' ନାମକ ଏକ ସଶସ୍ତ୍ର ମୁକ୍ତି ବାହିନୀ ଗଢ଼ି ବ୍ରିଟିଶ ପୋଲିସ ଓ ସାମରିକ ବାହିନୀ ଉପରେ ଆକ୍ରମଣ ଚଳାଇଲେ । ଓଡ଼ିଶାରେ ଦ୍ୱିବେଦୀଙ୍କ ନେତୃତ୍ୱରେ ତରୁଣ ସୋସଲିଷ୍ଟ ବାଙ୍କବିହାରୀ ଦାସ, ବିଶ୍ୱନାଥ ପଣ୍ଡିତ, ନିଶାମଣି ଖୁଣ୍ଟିଆ, ପ୍ୟାରିମୋହନ ଦାସ, ପ୍ରିୟନାଥ ଦେ, ନରସିଂହ ଚରଣ ମହାନ୍ତି, ଅନିଲ କୁମାର ଘୋଷ ପ୍ରମୁଖ ଅଗଷ୍ଟ ବିପ୍ଳବକୁ ତେଜାଇ ରଖିଥିଲେ, ଅବଶେଷରେ ସେମାନେ ରାଜଦ୍ରୋହ ଅପରାଧରେ ଧରା ହୋଇ ଜେଲ ଭୋଗିଲେ । ଜେଲରେ ପଶିଲାବେଳେ ସେମାନେ ଥିଲେ ଜଣେ ଜଣେ ରାଜଦ୍ରୋହୀ, ୧୯୪୫ ମସିହାରେ ମୁକ୍ତି ପାଇଲାବେଳେ ସେମାନେ ଜନଗଣଙ୍କ ଆଖିରେ ଜଣେ ଜଣେ ଜାତିୟ ବୀର ।

କଂଗ୍ରେସ ସୋସଲିଷ୍ଟ ପାର୍ଟିର ଅଗଷ୍ଟ ବିପ୍ଳବ ଏବଂ ଦ୍ୱିତୀୟ ମହାଯୁଦ୍ଧରେ ମିତ୍ର ଶକ୍ତିର ବିଜୟ ପରେ ଭାରତ ବର୍ଷର ସ୍ୱାଧୀନତା ପ୍ରାପ୍ତି ଆସନ୍ନ ହୋଇଆସିଥିଲା । ଜେଲରୁ ମୁକ୍ତି ପାଇଲା ପରେ ସୋସଲିଷ୍ଟମାନେ ଲୋକପ୍ରିୟତାର ପୁଞ୍ଜିକୁ ବିନିଯୋଗ କରି ସାରା ଓଡ଼ିଶାରେ ପାର୍ଟି ସଂଗଠନକୁ ସଂପ୍ରସାରଣ କରିବାକୁ ସ୍ଥିର କରିଥିଲେ, କିନ୍ତୁ ଜେଲରୁ ଫେରି ନବକୃଷ୍ଣ ଚୌଧୁରୀ ଘୋଷଣା କଲେ ଯେ ସେ ମହତାବଙ୍କ ନେତୃତ୍ୱରେ କଂଗ୍ରେସରେ ରହି କାର୍ଯ୍ୟ କରିବେ । ଦେଶ ସ୍ୱାଧୀନ ହେଲାପରେ କଂଗ୍ରେସ ଶାସନ କ୍ଷମତା ଦଖଲ କରିବ । ଆଇନଦ୍ୱାରା ଦେଶରେ ସମାଜବାଦ ପ୍ରତିଷ୍ଠା ସମ୍ଭବ ହେବ । ତେଣୁ କଂଗ୍ରେସ ମଧ୍ୟରେ ସୋସଲିଷ୍ଟ ପାର୍ଟିର ଆବଶ୍ୟକତା ହ୍ରାସ ପାଇବ ।

ବାଙ୍କ ବିହାରୀ ଦାସ ତାଙ୍କ ଆତ୍ମ ଜୀବନୀରେ ଲେଖିଛନ୍ତି, ଭଗବତୀ ଚରଣ ପାଣିଗ୍ରାହୀ କଂଗ୍ରେସ ସୋସଲିଷ୍ଟ ପାର୍ଟି ଛାଡ଼ି ଚାଲିଗଲା ବେଳେ ନବବାବୁଙ୍କ ଆଖି ଲୋତକରେ ଭରି ଯାଇଥିଲା । ବାଙ୍କ ବାବୁଙ୍କୁ ସେ ନିଜେ ସୋସଲିଷ୍ଟ ପାର୍ଟି ଛାଡ଼ି କଂଗ୍ରେସରେ ରହିଯାଉଛନ୍ତି ବୋଲି କହିଲାବେଳେ ସେହିପରି ତାଙ୍କ ଆଖି ଛଳଛଳ ହୋଇ ଉଠିଥିଲା ନବକୃଷ୍ଣ ଚୌଧୁରୀଙ୍କ ଅଶ୍ରୁଳ-ବିଦାୟ କିନ୍ତୁ ଓଡ଼ିଶାରେ ସୋସଲିଷ୍ଟ ପାର୍ଟି ଗଠନରେ ବଡ଼ ମାପର କୌଣସି ପ୍ରତିବନ୍ଧକ ସୃଷ୍ଟି କରିନଥିଲା । ୧୯୪୬ ମସିହା ଅକ୍ଟୋବର ୮ ତାରିଖ ଦିନ

କଟକ ସହର ନୟାସଡ଼କ ସ୍ଥିତ ସତ୍ୟନାରାୟଣ ପାଠାଗାର ପରିସର ମଧ୍ୟରେ ପାଟିର ୨୫, ୩୦ ଜଣ ଯୁବ ନେତା ଏହି ବୈଠକରେ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ବିଶ୍ୱନାଥ ପଣ୍ଡିତ, ବାଙ୍କବିହାରୀ ଦାସ, ରବିନ୍ଦ୍ରମୋହନ ଦାସ, ପ୍ରଦୀପ୍ତ କିଶୋର ଦାସ, ଗୌରଚନ୍ଦ୍ର ଦାସ, ଆକୁଳା ନନ୍ଦ ବେହେରା, ନିଶାମଣି ଖୁଣ୍ଟିଆ, ବୈକୁଣ୍ଠନାଥ ମହାନ୍ତି, ଲୋକନାଥ ରାୟ, ପ୍ରିୟନାଥ ଦେ, କଣ୍ଡୁରି ଚରଣ ମଲ୍ଲିକ ଏବଂ ବନମାଳୀ ମହାରଣା ପ୍ରମୁଖ । ସୁରେନ୍ଦ୍ର ନାଥ ଦ୍ୱିବେଦୀ ପାର୍ଟିର ସଂପାଦକ ଭାବରେ ନିର୍ବାଚିତ ହୋଇଥିଲେ ମଧ୍ୟ ସେ ଉତ୍କଳ କଂଗ୍ରେସ କମିଟିର ସାଧାରଣ ସଂପାଦକ ଦାୟିତ୍ୱରୁ ମୁକ୍ତ ହୋଇନଥିବାରୁ ବୈଠକରେ ଯୋଗ ଦେଇପାରିନଥିଲେ । କେନ୍ଦ୍ରୀୟ ପ୍ରର୍ଯ୍ୟବେକ୍ଷକ ଭାବରେ ଯୋଗ ଦେଇଥିଲେ ବିହାରର ଅଗଷ୍ଟ ବିପ୍ଳବି ରାମନନ୍ଦନ ମିଶ୍ର । ୧୯୪୮ ମସିହାରେ ସୋସଲିଷ୍ଟମାନେ କଂଗ୍ରେସ ଛାଡ଼ିଲାପରେ ପାର୍ଟିର ନାମ ରଖାଯାଇଥିଲା ସୋସଲିଷ୍ଟ ପାର୍ଟି ଏବଂ ପ୍ରଥମ ସାଧାରଣ ନିର୍ବାଚନ ପରେ ଆଚାର୍ଯ୍ୟ କୃପାଳିନୀଙ୍କ କୃଷକ ମଜଦୁରପ୍ରଜା ପାର୍ଟି ଏବଂ ସୁବାଷ ପନ୍ଥୀ ମିଶ୍ରଣ ପରେ ପାର୍ଟିର ନୂତନ ନାମକରଣ ହୋଇଥିଲା ପ୍ରଜା ସୋସଲିଷ୍ଟ ପାର୍ଟି ।

ପ୍ରଥମ ସାଧାରଣ ନିର୍ବାଚନରେ ସୋସଲିଷ୍ଟ ପାର୍ଟି ଜାତୀୟସ୍ତରରେ ଆଶାନୁରୂପ ସଫଳତା ଲାଭ କରିପାରିନଥିଲା । ଲୋକସଭାରେ କମ୍ୟୁନିଷ୍ଟ ପାର୍ଟିଠାରୁ କମ୍‌ ସ୍ଥାନ ଲାଭ କରି ଦ୍ୱିତୀୟସ୍ଥାନରେ ରହିଥିଲା । କେହି ଆଶା କରିନଥିଲେ ଯେ ସୋସଲିଷ୍ଟ ପାର୍ଟି କଂଗ୍ରେସ ବଦଳରେ କେନ୍ଦ୍ରରେ ଶାସନ କ୍ଷମତା ଦଖଲ କରିବ । କାରଣ ସାଂଗଠନିକ ଦୁର୍ବଳତା ଓ ଆର୍ଥିକ ସମ୍ବଳ ଅଭାବରୁ ସୋସଲିଷ୍ଟ ପାର୍ଟି ସିମୀତ ସଂଖ୍ୟକ ଆସନରେ ନିର୍ବାଚନ ପ୍ରତିଦ୍ୱନ୍ଦିତା କରିଥିଲା । ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ସୋସଲିଷ୍ଟମାନେ କଂଗ୍ରେସରେ ଥିଲେ । କଂଗ୍ରେସ ଛାଡ଼ି ଚାଲି ଆସିଲା ପରେ ସେମାନଙ୍କ ଆନ୍ଦୋଳନର ସକଳ ପୁଣ୍ୟ କଂଗ୍ରେସ ହିସାବ ଖାତାରେ ଲେଖା ହୋଇ ଯାଇଥିଲା । ଲୋକେ ତେଣୁ ଅଧିକ୍ ସଂଖ୍ୟାରେ କଂଗ୍ରେସ ପ୍ରାର୍ଥୀଙ୍କୁ ଜିତାଇଲେ । ଅନେକ ତୁଙ୍ଗ ସୋସଲିଷ୍ଟ ନେତା ନିର୍ବାଚନରେ ପରାଜିତ ହେଲେ, ଏହା ପାର୍ଟି ଭିତରେ କିଛି ପରିମାଣରେ ହତାଶାଭାବ ସୃଷ୍ଟି କଲା ।

ଆଚାର୍ଯ୍ୟ କୃପାଳିନୀଙ୍କ କୃଷକ ମଜଦୁର ପ୍ରଜା ପାର୍ଟିର ମିଶ୍ରଣ ଫଳରେ ପାର୍ଟିର ସାଙ୍ଗଠନିକ ଶକ୍ତି ବୃଦ୍ଧି ପାଇଲା ସତ୍ୟ, ହେଲେ ଆଦର୍ଶଗତ ବିଭ୍ରାନ୍ତ ସୃଷ୍ଟି ହେଲା । ମୂଳରୁ ସୋସଲିଷ୍ଟ ପାର୍ଟି ଏକ ମାର୍କ୍ସବାଦୀ ଦଳ ଭାବରେ କାର୍ଯ୍ୟ କରୁଥିଲା, ଶ୍ରେଣୀ ସଂଘର୍ଷ ଜରିଆରେ ସର୍ବହରାଙ୍କ ଏକଛତ୍ରବାଦ ବା ସଂଖ୍ୟା ଗରିଷ୍ଠ ଶୋଷିତ ଶ୍ରମିକ, କୃଷକ, ଖଟିଖିଆମାନଙ୍କ ରାଜତ୍ୱ ପ୍ରତିଷ୍ଠା କରିବା ପାର୍ଟିର ଘୋଷିତ ଲକ୍ଷ୍ୟ ଥିଲା, କିନ୍ତୁ ଗାନ୍ଧିବାଦୀ ଆଚାର୍ଯ୍ୟ କୃପାଳିନୀ ମାର୍କ୍ସବାଦ ଓ ଶ୍ରେଣୀ ସଂଘର୍ଷର ବିରୋଧି ଥିଲେ, 'Class struggle' ଶୀର୍ଷକ ଏକ ପୁସ୍ତକ (ପ୍ରକାଶକ : ଅଖିଳ ଭାରତ ସର୍ବସେବା ସଂଘ) ଲେଖି କାର୍ଲମାର୍କ୍ସଙ୍କ ସାମ୍ୟବାଦ ଓ ଶ୍ରେଣୀ - ସଂଘର୍ଷ ତତ୍ତ୍ୱକୁ ଖଣ୍ଡନ କରିଥିଲେ । ଫଳରେ ସମାଜବାଦୀ

କର୍ମୀମାନଙ୍କ ମଧ୍ୟରେ ବିଚାର ବିଭ୍ରାଟ ଦେଖାଗଲା । ଅନେକ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁଙ୍କୁ ପାର୍ଟି ସଭାପତି କୃପାଳିନୀଙ୍କ ଅପେକ୍ଷା ଅଧିକ ପ୍ରଗତିଶୀଳ ମନେ କରି କଂଗ୍ରେସ ସହିତ ସହଯୋଗ ପାଇଁ ବ୍ୟଗ୍ର ହୋଇ ଉଠିଲେ । ସେତିକିବେଳେ କେରଳରେ କଂଗ୍ରେସ ସମର୍ଥନରେ ପ୍ରଜା ସୋସଲିଷ୍ଟ ପାର୍ଟି ନେତା ପଟ୍ଟମଥାନୁ ପିଲାଇ ଏକ ସଂଖ୍ୟାଲଘୁ ସରକାର ଗଠନ କରିଥିଲେ । ତାଙ୍କ ଶାସନ କାଳରେ ପୋଲିସ ଗୁଳିରେ ଚାରିଜଣ ହିଂସ୍ର ବିକ୍ଷୋଭକାରୀ ପ୍ରାଣ ହରାଇଲେ । ସେତେବେଳେ ଡକ୍ଟର ଲୋହିଆ ଥିଲେ ପ୍ରଜା-ସୋସଲିଷ୍ଟ ପାର୍ଟିର ସାଧାରଣ ସଂପାଦକ । କଂଗ୍ରେସ ଶାସନରେ ପୋଲିସ ଗୁଳିରେ ବିକ୍ଷୋଭକାରୀ ପ୍ରାଣ ହରାଇଲେ ପ୍ରଜା-ସୋସଲିଷ୍ଟ ପାର୍ଟି କଂଗ୍ରେସ ସରକାରର ଇସ୍ତଫା ଦାବୀ କରୁଥିଲା । ତେଣୁ ସେ ପଟ୍ଟମ ଥାନୁ ପିଲ୍ଲାଇଙ୍କୁ ତୁରନ୍ତ ଇସ୍ତଫା ଦେବାକୁ ନିର୍ଦ୍ଦେଶ ଦେଲେ । ମ୍ୟାଜିଷ୍ଟ୍ରେଟଙ୍କ ଆଦେଶରେ ପୋଲିସ ଗୁଳି ଚାଳନା କଲେ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେବା ଠିକ୍ ହେବ କି ନାହିଁ, ସେଥିପାଇଁ ବିଚାର ବିମର୍ଶ ପାଇଁ ନାଗପୁର ଠାରେ ପାର୍ଟିର ଏକ ସ୍ୱତନ୍ତ୍ର ଅଧିବେଶନ ଡକା ହେଲା । ଡକ୍ଟର ଲୋହିଆଙ୍କ ପ୍ରସ୍ତାବ ସପକ୍ଷରେ ୩୧୭ ଏବଂ ବିପକ୍ଷରେ ୪୦୩ ଭୋଟ ମିଳିବାରୁ ପଟ୍ଟମ ଥାନୁ ପିଲାଇଙ୍କ ସଂଖ୍ୟା ଲଘୁ ସରକାର ବଞ୍ଚିଗଲା, କିନ୍ତୁ ଡକ୍ଟର ଲୋହିଆ ତାଙ୍କ ସମର୍ଥକମାନଙ୍କ ସହ ପାର୍ଟି ଛାଡ଼ି ଚାଲିଗଲେ । (୫) ପ୍ରଥମ ସାଧାରଣ ନିର୍ବାଚନ ପରାଜୟର ଧକ୍କା ସମ୍ଭାଳି ଦ୍ୱିତୀୟ ସାଧାରଣ ନିର୍ବାଚନର ସମ୍ମୁଖୀନ ହେବା ଆଗରୁ ଡକ୍ଟର ଲୋହିଆଙ୍କ ଦଳ ତ୍ୟାଗ ଏବଂ ଅଲଗା ସୋସଲିଷ୍ଟ ପାର୍ଟି ଗଠନ ଗଣତାନ୍ତ୍ରିକ ସମାଜବାଦୀ ଆନ୍ଦୋଳନକୁ ବିପର୍ଯ୍ୟସ୍ତ କରିଦେଲା ।

ଏହି ସମୟରେ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ମୃତ୍ୟୁ ଏବଂ ଜୟପ୍ରକାଶ ନାରାୟଣଙ୍କ ପ୍ରଜା-ସୋସଲିଷ୍ଟ ପାର୍ଟି ଛାଡ଼ି ବିନୋବାଭାବେଙ୍କ ସର୍ବୋଦୟ ଆନ୍ଦୋଳନରେ ଯୋଗ ଦେବା ଫଳରେ ପାର୍ଟିର ମେରୁଦଣ୍ଡ ଭାଙ୍ଗିଗଲା । ଏତିକିବେଳେ କଂଗ୍ରେସ ମଧ୍ୟ ଆଭାଡ଼ି ଅଧିବେଶନରେ ସମାଜବାଦୀ ଢାଞ୍ଚାରେ ସମାଜଗଠନ ନିଜର ଲକ୍ଷ୍ୟ ବୋଲି ଘୋଷଣା କରିବାଫଳରେ ପ୍ରଜା-ସୋସଲିଷ୍ଟ ନେତା ଅଶୋକ ମେହେଟ୍ଟା କଂଗ୍ରେସ ସହିତ ସହଯୋଗ କରିବା ଲାଗି ଏକ ଥିସିସ ଉପସ୍ଥାପନ କଲେ । ପଛୁଆ ଅର୍ଥନୀତିର ବାଧ ବାଧକତା (Compulsions of backward economy) ଶୀର୍ଷକ ନିବନ୍ଧରେ ଦେଶରେ ଅର୍ଥନୈତିକ ପ୍ରଗତି ଲାଗି ପ୍ରଜା ସୋସଲିଷ୍ଟ ପାର୍ଟି କଂଗ୍ରେସ ସହିତ ସହଯୋଗ କରିବା ଉଚିତ ବୋଲି ସେ ଯୁକ୍ତି ଉପସ୍ଥାପିତ କରିଥିଲେ । ପାର୍ଟି କଂଗ୍ରେସ ସହିତ ସହଯୋଗ କରିବା ସଂପର୍କରେ କୌଣସି ସିଦ୍ଧାନ୍ତ ନେବା ଆଗରୁ ସେ ନିଜେ କେନ୍ଦ୍ରସରକାରଙ୍କ ଖାଦ୍ୟ ଶସ୍ୟ ଅନୁସନ୍ଧାନ କମିଟିର ଅଧ୍ୟକ୍ଷ ପଦ ଗ୍ରହଣ କରିଥିଲେ । ଏହା ପାର୍ଟି ମଧ୍ୟରେ ଅଧିକ ବିଭ୍ରାନ୍ତି ଓ ବିଚାର ସଙ୍କଟ ସୃଷ୍ଟି କରିଥିଲା ।

ଏହି ସମୟରେ ଗୋଟିଏ ଘଟଣା ମୋର ମନେ ପଡ଼ିଯାଉଛି । ୧୯୫୯ ମସିହାରେ ବମ୍ବେଠାରେ ସୋସଲିଷ୍ଟ ଆନ୍ଦୋଳନର ୨୫ ବର୍ଷ ପୂର୍ତ୍ତି (୧୯୩୪ ରୁ ୧୯୫୯)

ଉପଲକ୍ଷ୍ୟେ ପାର୍ଟି ରୌପ୍ୟ ଜୟନ୍ତି ଅଧିବେଶନ ଅନୁଷ୍ଠିତ ହେଉଥାଏ । ଓଡ଼ିଶା ପାର୍ଟିର ଅନ୍ୟ ନେତୃବୃନ୍ଦ ସହ ମୁଁ ମଧ ପ୍ରତିନିଧିଭାବରେ ଯୋଗଦେଇଥିଲି । ସେହି ଅଧିବେଶନରେ ଅଶୋକ ମେହଟ୍ଟାଙ୍କ ସମର୍ଥକମାନଙ୍କ ତରଫରୁ କଂଗ୍ରେସ ଏକ ସମାଜବାଦୀ ଭାବାପନ୍ନ ଦଳ ହୋଇଥିବାରୁ ପ୍ରଜା ସୋସଲିଷ୍ଟ ପାର୍ଟି ଯେଉଁ କ୍ଷେତ୍ରରେ ନୀତିଗତ ମେଳ ଥିବ, ସେଭଳି କ୍ଷେତ୍ରରେ କେନ୍ଦ୍ର ସରକାରଙ୍କ ସହ ସହଯୋଗ କରିବା ଉଚିତ ବୋଲି ଏକ ପ୍ରସ୍ତାବ ଆଗତ ହୋଇଥିଲା । ସେତେବେଳେ ଉତ୍ତର ପ୍ରଦେଶ ପ୍ରଜା ସୋସଲିଷ୍ଟ ପାର୍ଟିର ସାଧାରଣ ସଂପାଦକ ଥିଲେ ତରୁଣ ଚନ୍ଦ୍ର ଶେଖର । ସେ ପ୍ରସ୍ତାବର ବିରୋଧ କରି ଭୋଟ ଦାବି କଲେ । ସେତେବେଳେ ପାର୍ଟିର ସଭାପତି ଥିଲେ ଗଙ୍ଗା ଶରଣ ସିଂହ । ସେ ପ୍ରସ୍ତାବ ସପକ୍ଷରେ ପ୍ରତିନିଧିମାନଙ୍କ ମତାମତ ଜାଣିବା ପାଇଁ ଭୋଟ ଗ୍ରହଣ ନିର୍ଦ୍ଦେଶ ଦେଲେ । ପ୍ରତିନିଧି ମଣ୍ଡପ ମଝିରେ ଗୋଟିଏ ଦଉଡ଼ି ଟଣା ହେଲା । ଯେଉଁ ପ୍ରତିନିଧିମାନେ ପ୍ରସ୍ତାବ ସପକ୍ଷରେ ସେମାନେ ମଣ୍ଡପ ଡାହାଣ ପଟକୁ ଏବଂ ବିରୋଧୀମାନେ ମଣ୍ଡପର ବାମ ପଟକୁ ଯିବା ପାଇଁ ଆମକୁ କୁହାଗଲା । ମଞ୍ଚଉପରୁ ସୁରେନ୍ଦ୍ରବାବୁ, ବାଙ୍କ ବାବୁ ଅଶୋକ ମେହଟ୍ଟାଙ୍କୁ ପାର୍ଟିରେ ଧରି ରଖିବାଲାଗି ପ୍ରସ୍ତାବ ସପକ୍ଷରେ ଡାହାଣ ପଟକୁ ଯିବା ପାଇଁ ଆକୁଳା ନନ୍ଦ ବେହେରାଙ୍କ ହାତରେ ଖବର ପଠାଇଲେ । ଓଡ଼ିଶା ପାର୍ଟି ଏକ ପରିବାର । ପରିବାରର ଅଭିଭାବକମାନଙ୍କ ଆଦେଶ ପାଳନ କରିବା ଆମର କର୍ତ୍ତବ୍ୟ ବୋଲି କହି ଆକୁଳି ବାବୁ ଚାଲିଗଲେ । ମୁଁ ସେତେବେଳେ ପାର୍ଟିର କନିଷ୍ଠତମ ପ୍ରତିନିଧି, ପାର୍ଟି ନେତୃବୃନ୍ଦଙ୍କର ଉପଦେଶ ଅମାନ୍ୟ କରିବା କେତେଦୂର ଠିକ୍‌ହେବ ସେକଥା ଭାବି ଇତସ୍ତତଃ ହେଉଥାଏ । ଧୂଳିଶ୍ୱର ବସ୍ତିଆ କହିଲେ - ପାର୍ଟିକୁ ବଞ୍ଚାଇବାକୁ ହେଲେ ଚାଲ, ଆମେ ଦଉଡ଼ି ଡେଇଁ ବାମପଟକୁ ଚାଲିଯିବା । ରାଜୁଭାଇ ମୋ ଦ୍ୱିଧାଭାବ ଦୂର କରିଦେଇ କହିଲେ - କଂଗ୍ରେସ ସହିତ ସହଯୋଗ ଦ୍ୱାରା ଦେଶରେ ସମାଜବାଦ ଆସିପାରିବ ନାହିଁ । ପାର୍ଟିକୁ ନିଜ ଗୋଡ଼ରେ ଠିଆ କରିବାକୁ ପଡ଼ିବ । ଚାଲ -

ଆମେତିନିଜଣ ଆଗପଛକୁ କିମ୍ବା ମଞ୍ଚଉପରକୁ ନଅନାଇ ଦଉଡ଼ି ଡେଇଁ ବାଁ ପଟକୁ ଚାଲିଗଲୁ । ଓଡ଼ିଶା ପ୍ରଜା ସୋସଲିଷ୍ଟ ପାର୍ଟିରେ ଆମେ ତିନିହେଁ ସଂଖ୍ୟାଲଘୁ ହେଲେହେଁ ସଂଖ୍ୟା ଗରିଷ୍ଠ ପ୍ରତିନିଧିଙ୍କ ଭୋଟରେ କଂଗ୍ରେସ ସହିତ ସହଯୋଗ ପ୍ରସ୍ତାବ ସେଦିନ କାଟଖାଇ ଥିଲା କିନ୍ତୁ କଂଗ୍ରେସକୁ ସୋସଲିଷ୍ଟମାନଙ୍କ ପ୍ରତ୍ୟାବର୍ତ୍ତନ ବେଶିଦିନ ଅଟକାଇ ରଖିହେଲାନାହିଁ ।

ଇନ୍ଦିରାଗାନ୍ଧୀଙ୍କ ଗରିବି ହଟାଓ ସ୍ଲୋଗାନ ଏବଂ ବ୍ୟାଙ୍କ ଜାତୀୟକରଣ - ରାଜାମହାରାଜାଙ୍କ ଭତ୍ତାକାଟ ସିଦ୍ଧାନ୍ତକୁ ସମାଜବାଦ ବୋଲି ମନେକରି ପ୍ରଥମେ ଚନ୍ଦ୍ରଶେଖରଓ ପରେ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ନେତୃତ୍ୱରେ ଓଡ଼ିଶାର ଅଧିକାଂଶ ସୋସଲିଷ୍ଟ କଂଗ୍ରେସରେ ଯୋଗ ଦେଲେ । ପାର୍ଟି ଏକପ୍ରକାର ଅସ୍ଥିକଙ୍କାଳ ସାର ଦୁର୍ବଳ ହୋଇଗଲା ।

ବିଶ୍ୱନାଥ ପଣ୍ଡିତ, ସମରେନ୍ଦ୍ର କୁଣ୍ଡୁ, କୃଷ୍ଣଚନ୍ଦ୍ରପାତ୍ର, ବ୍ରଜକିଶୋର ତ୍ରିପାଠୀ, ଭାଗବତ ବେହେରା, ରାଜେନ୍ଦ୍ର ପ୍ରସାଦ ସିଂହ ପ୍ରମୁଖ ଯେଉଁମାନେ ସୋସଲିଷ୍ଟ ପାର୍ଟିର ପତାକା ଶେଷ ପର୍ଯ୍ୟନ୍ତ ଉଡ଼ାଇ ରଖିଥିଲେ । ସେମାନେ ନିର୍ବାଚନ ରାଜନୀତି ଅପେକ୍ଷା ଶ୍ରମିକ ସଂଗଠନରେ ଅଧିକ ସମୟ ଓ ଶକ୍ତି ବିନିଯୋଗ କଲେ ।

ବିଶ୍ୱର ସବୁ ଦେଶରେ ସମାଜବାଦୀ ଓ ସାମ୍ୟବାଦୀ ଆନ୍ଦୋଳନ ଶ୍ରମିକ ସଂଗଠନକୁ କେନ୍ଦ୍ର କରି ଗଢ଼ି ଉଠେ । କଂଗ୍ରେସରୁ ଅଲଗା ହୋଇ ଓଡ଼ିଶାରେ ସୋସଲିଷ୍ଟ ପାର୍ଟି ଗଠିତ ହେଲାବେଳେ ଓଡ଼ିଶାରେ ଆଖି ଦୃଶିଆ କଳକାରଖାନା ବିଶେଷ ନଥିଲା । ରବୀନ୍ଦ୍ର ମୋହନ ଦାସଙ୍କୁ ଛାଡ଼ିଦେଲେ ଅନ୍ୟ କାହାର ଶ୍ରମିକ ସଂଗଠନ ସଂପର୍କରେ ଅଭିଜ୍ଞତା ନଥିଲା, ତେଣୁ ସୋସଲିଷ୍ଟ ପାର୍ଟି କଂଗ୍ରେସରୁ ଅଲଗା ହୋଇ ୧୯୪୮ ମସିହାରେ ଯେତେବେଳେ କମ୍ୟୁନିଷ୍ଟ ପରିଚାଳିତ ଏ.ଆଇ.ଟି.ୟୁ.ସି. ଏବଂ କଂଗ୍ରେସର ନିଖିଳ ଭାରତୀୟ ଜାତୀୟ ଟ୍ରେଡ଼ ୟୁନିୟନ କଂଗ୍ରେସ ଭଳି ନିଜସ୍ୱ ଶ୍ରମିକ ସଂଗଠନ ହିନ୍ଦ ମଜଦୁର ସଭା ଗଠନ କଲା ତାର ଓଡ଼ିଶା ଶାଖାର ସଭାପତି ରୂପେ କୌଣସି ସମାଜବାଦୀ ନେତା ନୁହନ୍ତି, ହିନ୍ଦ ସେବକ ସଂଘର ସଭ୍ୟ ଶ୍ୟାମସୁନ୍ଦର ମିଶ୍ର ନିର୍ବାଚିତ ହୋଇଥିଲେ । ସମ୍ପାଦକ ଥିଲେ ବାଙ୍କ ବିହାରୀ ଦାସ । ପ୍ରଥମେ ହିନ୍ଦ ମଜଦୁର ସଭା ବିଭିନ୍ନ ସରକାରୀ ଓ ବେସରକାରୀ ସେବା ସଂସ୍ଥାରେ କାର୍ଯ୍ୟ କରୁଥିବା ଶ୍ରମିକ ଓ କର୍ମଚାରୀମାନଙ୍କୁ ନେଇ ସଂଗଠନ ଆରମ୍ଭ କରିଥିଲା ବିଶ୍ୱନାଥ ପଣ୍ଡିତଙ୍କ ନେତୃତ୍ୱରେ କଟକ ମ୍ୟୁନିସିପାଲଟି୍ ମେହେନ୍ତର ସଂଘ, ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ଅଧ୍ୟକ୍ଷତାରେ ଚତୁର୍ଥ ଶ୍ରେଣୀ କର୍ମଚାରୀ ମହାସଂଘ ଗଠିତ ହୋଇଥିଲା । ପରେ ବିଶ୍ୱନାଥ ପଣ୍ଡିତ, କୃଷ୍ଣଚନ୍ଦ୍ର ପାତ୍ର, ଯୋଗେନ୍ଦ୍ର ତ୍ରିପାଠୀ ପ୍ରମୁଖ ମେଡ଼ିକାଲ କର୍ମଚାରୀ ସଂଘ, କେନ୍ଦୁପତ୍ର ତୋଳାଳି ସଂଘକୁ ରାଜ୍ୟବ୍ୟାପୀ ଶ୍ରମ ସଂଗଠନରେ ପରିଣତ କରିଥିଲେ । ଯୁବନେତା ଧୂଳିଶ୍ୱର ବସ୍ତିଆ ତାଳଚେର କୋଇଲା ଖଣି ଶ୍ରମିକ ୟୁନିୟନ ବ୍ରଜରାଜ ନଗର କାଗଜ କଳ, ରାଜଗାଙ୍ଗପୁର ସିମେଣ୍ଟ କାରଖାନା, ବିରମିତ୍ରପୁର, କାଂସବାହାଲର ବିଭିନ୍ନ କଳ କାରଖାନାରେ ଶ୍ରମିକ ସଂଗଠନ ଗଢ଼ିତୋଳିଥିଲେ । ରାଉରକେଲା ଇସ୍ପାତ କାରଖାନା ପ୍ରତିଷ୍ଠାବେଳେ ବାଙ୍କ ବିହାରୀ ଦାସ ପ୍ରଥମେ ଏଠାରେ ଶ୍ରମିକମାନଙ୍କୁ ସଂଗଠିତ କରି କାମ ଆରମ୍ଭ କରିଥିଲେ । କିନ୍ତୁ ପାର୍ଟି ସଂଗଠନ କାର୍ଯ୍ୟରେ ତାଙ୍କୁ ପୁରା ସମୟ ଦେବା ଜରୁରୀ ହୋଇପଡ଼ିବାରୁ ରାଉରକେଲା ମଜଦୁର ସଭା ଦାୟିତ୍ୱ ଧୂଳିଶ୍ୱର ବସ୍ତିଆ ଗ୍ରହଣ କରି ଥିଲେ । ତାଙ୍କ ବିଚକ୍ଷଣ ନେତୃତ୍ୱରେ ରାଉରକେଲା ଇସ୍ପାତ କାରଖାନାର ଶ୍ରମିକମାନେ ହିନ୍ଦ ମଜଦୁର ସଭା ପତାକା ତଳେ ଐକ୍ୟବଦ୍ଧ ହୋଇଥିଲେ, କିନ୍ତୁ ୧୯୬୬ ମସିହାରେ ତାଙ୍କ ଅକାଳ ବିୟୋଗ ଫଳରେ ତାଙ୍କ ଶୂନ୍ୟସ୍ଥାନ ପୂରଣ କରିବା ପାଇଁ ପାର୍ଟି ରାଜୁବାବୁଙ୍କୁ ରାଉରକେଲା ପଠାଇ ଥିଲା । ପ୍ରଜା ସୋସଲିଷ୍ଟ ପାର୍ଟିର ସାଧାରଣ ସଂପାଦକ ଭାବରେସେ ଯେପରି ନିଜର ସଂଗଠନ କ୍ଷମତାର ପରିଚୟ ଦେଇଥିଲେ, ରାଉରକେଲା ମଜଦୁର ସଭା

ପୂର୍ନଗଠନରେ ମଧ୍ୟ ସେ ଅନୁରୂପ ପାରଦର୍ଶିତା ପ୍ରଦର୍ଶନ କରିପାରିଥିଲେ । ତାଙ୍କର ଆବର୍ତ୍ତମାନରେ ପୂର୍ବତନ ସୋସଲିଷ୍ଟ ବିଧାୟକ, ଅଭିଜ୍ଞ ଶ୍ରମିକ ନେତା ରାଜେନ୍ଦ୍ର ସିଂହ ମଜଦୁର ସଭାର ଦାୟିତ୍ୱ ଗ୍ରହଣ କରିଥିବା ଯୋଗୁଁ ହିନ୍ଦ ମଜଦୁର ସଭା ଉତ୍ତରୋତ୍ତର ଅଗ୍ରଗତି କରିବ ବୋଲି ମୋର ଦୃଢ଼ ବିଶ୍ୱାସ ।

୧୯୭୭ ମସିହାରେ ଜନତା ପାର୍ଟିରେ ସୋସଲିଷ୍ଟ ପାର୍ଟିର ବିଲୟ ପରେ ଆଜି ଆଉ ଶ୍ରମିକ, କୃଷକ, ଶ୍ରମଜୀବି ମଣିଷଙ୍କର ସ୍ୱାର୍ଥରକ୍ଷାଲାଗି କୌଣସି ଗଣତାନ୍ତ୍ରିକ ସାମ୍ୟବାଦୀ ରାଜନୈତିକ ଦଳ ନାହିଁ । ୧୯୯୧ ମସିହାରେ ସୋଭିଏତ ଋଷରେ କମ୍ୟୁନିଷ୍ଟ ଶାସନର ଦୁର୍ଗପତନ ପରେ ବିଶ୍ୱର ବିଭିନ୍ନ ଦେଶର କମ୍ୟୁନିଷ୍ଟ ପାର୍ଟିମାନଙ୍କୁ ସାମ୍ୟବାଦୀ ରଣକୌଶଳ ଶିକ୍ଷା ଦେବା ଲାଗି କମ୍ୟୁନିଷ୍ଟ ଇଣ୍ଟରନେସନାଲ ସଂଗଠନ ମଧ୍ୟ ନାହିଁ । ପାର୍ଟି ଭାଙ୍ଗିଯିବାପରେ ସୋସଲିଷ୍ଟମାନେ ବିଭିନ୍ନ ରାଜନୈତିକ ଦଳରେ ବାଣ୍ଟି ହୋଇରହିଛନ୍ତି । ପାର୍ଟି ଭାଙ୍ଗିଯାଇଥିଲେବି ହିନ୍ଦ ମଜଦୁର ସଭା ଅତୁଟ ରହିଛି । ଏହା ଏକ ଅଣରାଜନୈତିକ ସମାଜବାଦୀ ଶକ୍ତି ଶାଳୀ ଶ୍ରମିକ ଅନୁଷ୍ଠାନ । ସର୍ବୋଦୟ ସଂଗଠନ ଠାରୁ ଆରମ୍ଭ କରି ବିଭିନ୍ନ ରାଜନୈତିକ ଦଳରେ କାର୍ଯ୍ୟକରୁଥିବା ସମାଜବାଦୀମାନେ ହିନ୍ଦ ମଜଦୁର ସଭା ପତାକା ତଳେ ଶ୍ରମିକ ମାନଙ୍କ ସେବାରେ ଐକ୍ୟବଦ୍ଧଭାବେ ନିଜକୁ ଉତ୍ସର୍ଗ କରିବା ବର୍ତ୍ତମାନ ପରିସ୍ଥିରେ ଏକାନ୍ତ ଜରୁରୀ ଆଜି ଆମ ଦେଶ Ideology ରୁ Technology ର ଯୁଗରେ ପ୍ରବେଶ କରିଛି । ବିଂଶ ଶତାବ୍ଦୀ ଥିଲା ମାର୍କ୍ସବାଦ, ଗଣତାନ୍ତ୍ରିକ ସାମ୍ୟବାଦ ଏବଂ ଗାନ୍ଧିବାଦର ଯୁଗ । ଏକବିଂଶ ଶତାବ୍ଦୀ ପ୍ରଯୁକ୍ତି ବିଦ୍ୟାରଯୁଗ । ପ୍ରଯୁକ୍ତି ବିଦ୍ୟାରେ ଉନ୍ନତ ପଶ୍ଚିମ ପୁଞ୍ଜିବାଦୀ, ସାମ୍ରାଜ୍ୟବାଦୀ ଦେଶମାନେ ଜଗତିକରଣ ଅର୍ଥନୀତିକୁ ଅସ୍ତ୍ରକରି ଆମର ବଜାର ଦଖଲ କରିବାକୁ ଲାଗିଛନ୍ତି । ଇଷ୍ଟଇଣ୍ଡିଆ କଂପାନୀ ଆମଦେଶର ରାଜନୈତିକ ସ୍ୱାଧୀନତା ଅପହରଣ କରିନେଇଥିଲା, ବର୍ତ୍ତମାନ ବିଦେଶୀ ମଲଟିନେସନାଲ କଂପାନୀମାନେ ଆମର ସ୍ୱାବଲମ୍ବନଶୀଳ ଅର୍ଥନୈତିକ ସ୍ୱାଧୀନତାକୁ କିଣିନେବାରେ ଲାଗିଛନ୍ତି । ରାଷ୍ଟ୍ରୟାତ ଶିଳ୍ପର ଘରୋଇକରଣ ପ୍ରକ୍ରିୟା ଆରମ୍ଭ ହୋଇଯାଇଛି । ତାଳଚେର ସାରକାରଖାନାଭଳି ଶହ ଶହ ରାଷ୍ଟ୍ରାୟତ ଶିଳ୍ପ ବନ୍ଦ ହୋଇଯାଉଛି, ଲକ୍ଷ ଲକ୍ଷ ଶ୍ରମିକ ବେକାର ହୋଇଯାଉଛନ୍ତି । ଉଦାରିକରଣ ବଜାରୀ ଅର୍ଥନୀତିର ଫେରିବାଲାମାନେ ବିଦେଶୀ କଂପାନୀମାନଙ୍କ ପାଇଁ ଆମର ବଜାର ଖୋଲିଦେଇଛନ୍ତି । ଅର୍ଥନୈତିକ ସଂସ୍କାର ଫଳରେ ଆମର ବୈଦେଶିକ ମୁଦ୍ରା ଭଣ୍ଡାର ଉଚ୍ଛୁଳୁ ମୁଚ୍ଛୁଳୁ ହୋଇଛି, ଦେଶର ସଂପଦ ବୃଦ୍ଧିପାଇଛି ବୋଲି ଆମକୁ ହିସାବ ଦେଖାଯାଉଛି, ତା ସହିତ ଦାରିଦ୍ର୍ୟ ଏବଂ ଅର୍ଥନୈତିକ ବୈଷମ୍ୟ ବୃଦ୍ଧି ପାଇଥିବା କୁହାଯାଉଛି । ଦେଶର ଉତ୍ପାଦନ ଓ ସଂପଦର ସମବଣ୍ଟନ ପାଇଁ ସମାଜବାଦୀ ଅର୍ଥନୀତିର ପ୍ରୟୋଗ ଜରୁରୀ ହୋଇଉଠିଛି । ସମାଜର ନଗଣ୍ୟ ଏକ ଅଂଶ ଉପଭୋକ୍ତା ଭାବରେ ମୌଜମଜଲିସରେ ରହୁଥିବା ବେଳେ ବିପୁଳ ସଂଖ୍ୟକ ଲୋକ ଅନାହାରରେ ଅର୍ଦ୍ଧଆହାରରେ କାଳ କାଟୁଛନ୍ତି ।

ଦେଶର ଏଭଳି ବିପନ୍ନ ଅର୍ଥନୈତିକ ପରିସ୍ଥିତିରେ କୋଟି କୋଟି କର୍ମହୀନ ବେକାରଙ୍କୁ କାମ ଏବଂ ନିରାହ ମଣିଷଙ୍କ ମୁହଁରେ ଅନ୍ନ ଦେବା ପାଇଁ ଶ୍ରମିକ ସଂଗଠନ କେବଳ ନିଜର ଅର୍ଥନୈତିକ ସୁରକ୍ଷା ନୁହେଁ, ଦେଶର ଅର୍ଥନୈତିକ ସ୍ୱାବଲମ୍ବନଶୀଳତା, ଗଣତନ୍ତ୍ର ଓ ଧର୍ମନିରପେକ୍ଷତାର ସୁରକ୍ଷା ପାଇଁ ସଂକଳ୍ପ ବଦ୍ଧ ହେବା ଉଚିତ । ସମାଜବାଦ, ଗଣତନ୍ତ୍ର ଏବଂ ଧର୍ମନିରପେକ୍ଷତା ପରସ୍ପର ଅଙ୍ଗାଙ୍ଗିଭାବେ ଜଡ଼ିତ । ଗୋଟିକୁ ବାଦ ଦେଇ ଅନ୍ୟର ସ୍ଥିତି ନାହିଁ । ଏହିଭଳି ଏକ ସମାଜବାଦୀ ଧର୍ମନିରପକ୍ଷ ଗଣତାନ୍ତ୍ରିକ ଭାରତ ବର୍ଷର ନିର୍ମାଣ ପାଇଁ ୭୫ ବର୍ଷ ତଳେ ୧୯୩୪ ମସିହାରେ ଆଚାର୍ଯ୍ୟ ନରେନ୍ଦ୍ରଦେବ, ଜୟପ୍ରକାଶ ନାରାୟଣ ଓ ଡକ୍ଟର ରାମମନୋହୋର ଲୋହିଆ ଗଣତାନ୍ତ୍ରିକ ସମାଜବାଦୀ ଆନ୍ଦୋଳନ ଆରମ୍ଭ କରିଥିଲେ । ଆନ୍ଦୋଳନର ଏକ ଅଙ୍ଗ ଥିଲା ହିନ୍ଦ ମଜଦୁର ସଭା ଓଡ଼ିଶାରେ ହିନ୍ଦ ମଜଦୁର ସଭା ପତାକା ତଳେ ଶ୍ରମିକ ମାନଙ୍କୁ ସଂଗଠିତ କରିବା ପାଇଁ ଧୁଳିଶ୍ୱର ବଣ୍ଡିଆ, ସମରେନ୍ଦ୍ର କୁଣ୍ଡୁ, ବିଶ୍ୱନାଥ ପଣ୍ଡିତ, ବାଙ୍କ ବିହାରୀ ଦାସ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଭାଗବତ ବେହେରା ଏବଂ ଶେଷରେ ରାଜକିଶୋର ସାମନ୍ତରାୟ କାର୍ଯ୍ୟକରି ସହୀଦ ହୋଇଛନ୍ତି । ସୋସଲିଷ୍ଟ ପାର୍ଟି ଭାଙ୍ଗିଯାଇଥିଲେ ମଧ୍ୟ ଗଣତାନ୍ତ୍ରିକ ସମାଜବାଦୀ ଆନ୍ଦୋଳନ ଶେଷ ହୋଇଯାଇ ନାହିଁ । ସେମାନଙ୍କର ସେ ସ୍ୱପ୍ନକୁ ବାସ୍ତବରେ ପରିଣତ କରିବାପାଇଁ ସମସ୍ତେ ପୁନଶ୍ଚ ଅଙ୍ଗିକାର ବଦ୍ଧହେଲେ ସେମାନଙ୍କର ଅମର ଆତ୍ମାପ୍ରତି ତାହାହେବ ପ୍ରକୃତ ଶ୍ରଦ୍ଧାଞ୍ଜଳି ।

- ଜୟହିନ୍ଦ -

**Reference :**

1. Malati Choudhury by Prem Bhasin Janata, April 19.1998
2. My recollections by Acharya Narendra Dev
3. Socialism and National movement by Acharya Naredra Dev
4. Towards a New Society by Jayaprakash Narayan
5. ସମାଜବାଦୀ ଆନ୍ଦୋଳନର ଇତିହାସ ଏବଂ ଡକ୍ଟର ଲୋହିଆ ।